ଅନାଥ ଶ୍ରୀ ବୈଦ୍ୟନାଥଙ୍କ ରଚିତ

# ଭକ୍ତଙ୍କର ଭଜନମାଳି ।

—:0:—

ଶ୍ରୀ ଗଣେଶ୍ବର ଦାସଙ୍କଦ୍ବାରା ସଂଶୋଧିତ

= + =

ବେଲଡଲ ଗ୍ରାମ ନିବାସି

ଅନାଥ ଶ୍ରୀ ବୈଦ୍ୟନାଥ ଓ ବାଉରୀବନ୍ଧୁ ଦାସଙ୍କଦ୍ବାରା

ପ୍ରଥମବାର ପ୍ରକାଶିତ ।

PRINTED & PUBLISHED BY SARAT CH. RAY.
AT THE ANGLO SANSKRIT PRESS,
51, SANKARITOLA
CALCUTTA.
1921



ମୂଲ୍ୟ ଦୁଇଅଣା ମାତ୍ର ।

# ଭକ୍ତଙ୍କର ଭଜନମାଳି ।



ଦୟାକର ହେ ଅନାଥ ବାନ୍ଧବେ ବନ୍ଧୁ ଜବାସି । ମୁଁ ବଡ଼ ଦାରିଦ୍ର ହୋଇ ଜଗତରେ ଅଛେ ଉପାସି । ୧ । ଭଲ ବିଧାତା କି କଲା ଦାରିଦ୍ରରେ ପୂର୍ଣ୍ଣ ଦେଲା । ତାପାଇଁ ଆଣିଲି ଗାଈ, ତାକୁ ନେଲା କେଉଁ ଦୋଷି । ୨ । ହାଟକୁ କହଣ ଆଶା ଗାଈ ଖୋଜିବା ଭରସା ଯାଉଅଛୁ ସେଥିପାଇଁ ହୋଇଣ ମୁହିଁ ବିଦେଶୀ । ୩ । ପ୍ରଭୁ ବୋଲେ ବିପ୍ର ତୁହି ହାଟକୁ ଯିବୁ ଗୋସାଇଁ କିଛି ସୌଦା ଆମ୍ଭପାଇଁ ଆଣିଣ ବିପ୍ର ଦିଅସି । ୪ । ବିପ୍ର ବୋଲେ ବନ୍ଧୁ ବାସି ମୁଁ ଅଟଇ ଶୂନ୍ୟବାସି କି ଦେଇ ଆଣିବି ମୁହିଁ ତୁହିଁ ହେ ବନ୍ଧରେ ବସି । ୫ । ହେ ଅନାଥ ବୋଲେ ବିପ୍ର ଦୟା କରିଣ ଯେ ଶତ । ବେଣୀ ମୂଲ ତଲେ ଦେଖ ଲକ୍ଷପଇସା ଲଅସି । ୬ । ନେଇ ଆଣି ମେଳା ଦିଅ ମୁ ସ୍ଥଳରେ ଦିନ କଷ୍ଟଥ । ବୈଦ୍ୟନାଥ ଗୀତେ ବୋଲେ ହେ ବିପ୍ର ମେଳା ଦିଅସି ॥

-୦୦୦-

ଜ୍ଞାନୀ ହୋ କହ ଅକ୍ଷର ଭାବ । କେଉଁ ଅକ୍ଷରରେ କେ କେଉଁ ଦେବ । ଘୋଷା ।

ହେ ଶୂନ୍ୟ ଅଟଇ ଓଁକାର ଯେ ତହିଁ ତହିଁ କେତେଅକ୍ଷର ହୋଇ ଛଇବ । କେ କେଉଁ ସ୍ଥାନରେ କେତେକ ଅକ୍ଷର ମୁକ୍ତିଜନେ ଏହା ମୋତେ କହିବ । ୧ । ଯଷ୍ଟ ଶୃଙ୍ଗାକ୍ଷର ଯେ କେଉଁ ଠାବର କହିବ ଏଥିର ସନ୍ଧିଶବଦ । କ ଖ କେଉଁ ସ୍ଥାନ ବିରାଜ କରିଛୁ ଗ ଘ ଅଟଇ ଯେ କେବଣ ଠାବ । ୨ । ଙ ଅକ୍ଷରଟି ଯେ କହିବ ମୁକ୍ତିଜ୍ଞାନୀ ଚ ଛ ଜ ଝ ଞ ଟ ଠ ରେ ଲାବ । ଡ ଢ ବୋଲିଣ ଯେ ଅକ୍ଷର ହୁଇଟି ଣ ଯଇ ଥାଇଟି କେବଣ ଠାବ । ୩ । ତ ଥ ଅକ୍ଷର ଯହିଁ ଦ ଧ କେଉଁ ଠାର ଏଥିରେ ସୋଠାରେ ସନ୍ଧି କହିବ । ନ ବୋଲିଣ ଯେତୁ ପ ଫ ବୋଲ

କେନ୍ତୁ ଙ ଡ ରେ କହିବ ଯେ ତତ୍ତ୍ୱ ଭାବ । ୪ । ମ ଯ ର ଲ ଯେନ୍ତୁ ବ ଶ ଷ ସ କାହିଁ ଏ କଥା ବୁଝାଇ ମୋତେ କହିବ । ହ କ୍ଷ ବେ ଲ କହୁଅଛୁ କେଉଁ ଠ.ର କହେ ବୈଦ୍ୟନାଥ ବୁଝାଇ ଦିବ । ୫ ।

—o—

ଜୟ ଜୟ ସର୍ବ ମଙ୍ଗଳା ଯୋଗିନୀ ସଙ୍ଗେ ଘେନି କରୁଛୁ ଖେଳା । ଗୋ ମୋ ମାତ ଲଗାଇଣ ଅଛୁ ଭଲା ମୋ ଜନନୀ ଗୋ । ୧ । ଭୂଆ ଗଡଅଟରେ ବାସ, ଦେଉଛି ହସ୍ତରେ ହୋଇ ସନ୍ତୋଷ, ଗୋ ପୂଜା ଦ୍ୟନ୍ତି ସର୍ବ ଦେଶ, ଜନନୀ ଗୋ । ୨ । ଗ୍ରାମେ ବିପତ୍ତି ପଡିଲେ, ପୂଜା ପାଇ ରକ୍ଷା କରୁ ଛୁ ଭଲେ ଗୋ । ଆତଙ୍କବାଲେ ଡାକିଲେ ଜନନୀ ଗୋ । ୩ । ଧୂପ ଦୀପ ପୁଷ୍ପ ଦେଇ, ସିନ୍ଦୂର ଶୋଭିତ ଦ ସୀ ଲଗାଇ ଗୋ । ଭଲ ମନ୍ଦ ଦେଉ କହି, ଜନନୀ ଗୋ । ୪ । ସନ ତେରସ ତେଇଶି ଗ୍ରାମରେ ରହି ଲଗାଉ ଦାସି ଗୋ । ବିପତ୍ତିଖଣ୍ଡୁ ଛୁ ଆସି ଜନନୀ ଗୋ ।୫। ଏଡେ଼ ବଡ଼ ମାତା ଥାଉ ବିପତ୍ତି କାଳରେ ନ ଶୁଣୁ ଆଉ ଗୋ ତୁମ୍ଭ ନାମଧରି ଜୀବନ୍ତ ଉ ଜନନୀ ଗୋ । ୬ । ହରି ବୋଲ ହୁଲାହୁଲି । ଆନନ୍ଦରେ ନାଚି ଥାଉ ମାତନ୍ତି ଗୋ । ଗଳେ ଥାଏ ଫୁଲମାଳୀ ଜନନି ଗୋ । ୭ । ମାଜଣା ପୂଜା ଛୁ ପାଉ ଦୁଜା ପାଇ ତୁମ୍ଭ ମନ୍ଦିରେ ରହୁ ଗୋ । ଏମନ୍ତ ଆଜ୍ଞା ତୁ ଦେଉ ଜନନୀ ଗୋ । ୮ । ଉକାଷ କଣ୍ଠେ ବସିଲୁ ମନ୍ଦରେ, ବସିଣ ହରସ ହେଲୁ ଗୋ । ବଇଦା ଦୁଃଖ ନ ନେଲୁ ଜନନି ଗୋ । ୯ ।

—o—

ଜୟ ବଳଦେବ ଦେବ ଦେବ ମାଧବ । ମୋ ଦୁଃଖ ନ ଗଲା କାହିଁକି । ଭାରଥ ଯୁଦ୍ଧରେ କୁରୁଙ୍କ ସଙ୍ଗରେ ସାହା ହୋଇଥିଲ ଯାଇ କି । ହେ ହରି । ଘୋଷା ।

ପତିତପାବନ । ହେ ଦୁଃଖ ନାଶନ ଡାକିଲେ ନ ଶୁଣ କାହିଁକି । ହଳମୂଳ ଧାରଣ ଆରତ ତାରଣ ଭକ୍ତଙ୍କ କଷ୍ଟେ ଶୁଣକି । ୧ । ବୈକୁଣ୍ଠ ପୁରରେ ଦ୍ୱାରପାଳ ହେଲ । ରେବତୀଙ୍କି ସଙ୍ଗେ ଘେନି କ ।।

ଦ୍ୱାପର ଯୁଗରେ କାହ୍ନୁଙ୍କ ସଙ୍ଗରେ, ଯାଇଥିଲ ପଦ୍ମ ତୋଳି କି ।୨। କାଳୀୟ ହ୍ରଦରେ, କାଳୀକି ମର୍ଦ୍ଦିଲ, ଗାରୁଡ ପଦ ରଖିଲ କି । କାହ୍ନୁଙ୍କ ଚରଣେ, କାଳୀ ଯେ ଡଂଶିଲେ ଖୋଜିଣ ମାଇଲ କାଳୀକି ।୩। ଶ୍ରୀମ ଜଗନ୍ନାଥ, ବଳଭଦ୍ର ଗୋଚର, ବ୍ରାହ୍ମଣ ଅଛନ୍ତି ଲଭୁକି । ତୁମ୍ଭ ପାଦେ ଧ୍ୟାୟି ସେବା କରୁଥାନ୍ତି ଜାଇ ପଡ ପାଉ-ଥାନ୍ତି କି ।୪। ଭାବ ବୈଦ୍ୟ ନାଥ ପ୍ରଭୁ ପାଦେ ଶତ୍ରୁ ଲଭ୍ୟ ଅନ୍ୱେଷେ କରୁଥାଇ କି । ସାଧୁ ଜଣେ ଥିଲ ତୋ ନାମ ଭଜିଲ ଦେଉଳ ତୋଳାଇ ଦେଲ କି ।୫।

---

ସତ ସଙ୍ଗେ ସଙ୍ଗ ଭାଷଣ । ମୂର୍ଖଜନେ ଗୁଣ । ଦୋଷ ।

ନାରଦ ବନେ ଗଲେ ସେ କୈଳାଶେ ବିଜେ କଲେ । ପାର୍ବତୀ ଅଗେ ମିଳିଲେ । ପଚାରିଲେ ଗୁପ୍ତଜ୍ଞାନ ।୧। ପାର୍ବତୀ ତାହା ଶୁଣିଣ ମନରେ ହେଲେ ମଉନ । ଶିବ ବନରୁ ଆସିଣ । ପାର୍ବତୀ ମୁଖ ମଳିଣି । ପଚାରିଲେ ତ୍ରିଲୋଚନ କିପାଁ ଗୋ ବିରସ ମନ । କହ କହ ଗୋ ସଜନୀ ମୋତେ । ମନୁ ଫେଡନ୍ତି ତୋ ମାନ ।୨। ପାର୍ବତୀ ହୋଇଲେ ହର । ମୁଣ୍ଡମାଳା ତୋ ଗଳାର । କିପାଁ ବନ୍ଧିଅଛ ହର । ଫେଡି କହ ମୋ ଅଗେଣ । ଈଶ୍ୱର ବୋଇଲେ ସତୀ । ତୋ ଅଗେ କହିବି ମୁହିଁ । ମନରେ ନ କର ମାନ । କର ଭୁଷି ଗୋ ଲୋଚନ ।୩। ଗୁପ୍ତରେ କହିବି ମୁହିଁ । ନ କହିବୁ କାହିଁ ତୁହି । ଗୀତେ ବୈଦ୍ୟନାଥ କହି । ହରି ପାଦରେ ଶରଣ ।

---

ଅଜ ବ୍ରଜରାଜ ମୋହନ । ବଂଶି ବଜାଉଛି ବନରେ । ବଂଶି ସ୍ୱନ ଶୁଣି ହୃଦ ହୋଏ ହାଣି । ପ୍ରାଣ ନ ରହୁଛି ଦେହ ରେ ।୧। ଚଲ ସଖୀ ଯିବା, ଶ୍ରୀକୃଷ୍ଣ ଦେଖିବା । ଦେଖିବା ଯମୁନା କୂଳରେ । କଦମ୍ବ ମୂଳରେ, ଯମୁନା କୂଳରେ । ସ୍ତବ ଲଗାଇବା ସେଠାରେ ) ସବୁ ଗୋପ ଗୋଈ, ବନେ ଗଲେ ତହିଁ । କେହି ନ ରହିଲେ

ସୁହରେ । ଗାଈ କେ ଦୁହନ । କେ ଦଧି ମନ୍ଥନ । ବାଳକ ପକାଇ ଜଳରେ । ୩ । ନୟନେ କଜ୍ଜଳ । ଛୁଡି ସ୍ୱାମୀ କୂଳ । ଲଜ୍ଜ୍ୟା ନ ରଖିଲେ କେହୁ ରେ । ସ୍ୱାମୀ ଯେ କାହାର । ଓଗାଳେ ଆଗର । କେ ବାନ୍ଧେ ଗମ୍ଭିର ଝଟରେ । ୪ । ସର୍ବେ ଗୋପୀ ମିଳି କୁଞ୍ଜବନେ ଜଳ । କେଳି ଆରମ୍ଭିଲେ ବନରେ । ବୈଦ୍ୟନାଥ ବୋଲେ, ସର୍ବ ଗୋପୀ ଗଲେ । ମିଳିଲେ ଯେ ଯାହା ପୁରରେ । ୫ ।

=✱=

ଜଗତ ନାଥ ଜଗନ୍ନାଥ ବାରେ କୃପାକର ମୋହଠାରେ ।
ତୁମ୍ଭ ନାମ ଭାବି ଭାବି ମୁହିଁ ଚିତ୍ତ ରଖିଅଛୁ ପଦ୍ମ ପାଦରେ । ପଦ ।
ତୁମ୍ଭ ନାମ ଭାବି ବଡଦାଣ୍ଡ ଗଲି ସେ ରେଣୁ ମାଇଲି ମସ୍ତକରେ ।
ସିଂହଦ୍ୱାରେ ଯାଇଁ ପ୍ରବେଶ ହୋଇଲି ବାଉ ପଡିଅଛୁ ସେଠାବରେ ॥
ବାଇଶି ପାବଛ ଚଢ଼ି ଯାଏ ଭାତ କୈବଲ୍ୟ ଭୁଞ୍ଜନ୍ତ ସୁର ନରେ ।
ଝିଙ୍କ ତୋରଣିରେ ମନ ତୋଷ କରି ହସ୍ତ ଯୋଡ଼ନ୍ତି ଯେ ମସ୍ତକରେ ॥
ରୋହଣୀ କୁଣ୍ଡରେ ପ୍ରବେଶ ହୋଇଲି କାକ ପଡ ଚର୍ତୁଜ ସେଠାରେ
ଗଜକନ୍ଦ ମାଡ ବ୍ୟାଘ୍ର ବସିଅଛୁ ଗରୁଡ଼ ସ୍ତମ୍ଭ ଯେ ତଥିଉପରେ ।୩।
କଳ୍ପବଟ ମୂଳେ ମହୋଦଧି କୂଳେ କଜେ କରିଅଛ ବଡଦେଉଳେ ।
ତୁମ୍ଭ ନାମ ସେବି ବୈଦ୍ୟ ଅରକ୍ଷିତ ଭାଷି ଯାଉଅଛି ଭବସାଗରେ ॥

---

କହେ ମନ ରଇତନ ଭଜ ତୁ ହରି ।
କୃଷ୍ଣଙ୍କୁ ଭାବି ପାରିଲେ ଭବରୁ ହେବୁ ପାରି । ଘୋଷା ।

ଷିନନାଲି ତଟ ଗଅ ଯେ ଗୁଣ୍ଡ ହାଟ । ଘନଶ୍ୟାମଙ୍କୁ ଭାବିଣ ହାଟେ ଦୁଅ ବେପାରି । ୧ । କଅ ଯେ ନିରଞ୍ଜନ ଚିତରେ କର ଧ୍ୟାନ । ଛ ଛପନାକ୍ଷରଙ୍କୁ ଭାବିଣ ହୋଅ ପାରି । ୨ । ଯ ଜଗବନ୍ଧୁ ନାମ ଝୁ ଝୁଁଲୁଛି ଲବଣ । କହେ ତୁହ କର ପାନ ଭବରୁ ହେବୁ ପାରି । ୩ । ନ ଅଟେ ଯେ ଲଲାଟ ଟ ଶୋପରେ ତୁ ଦେଟ ୟ ଠିକେ ଦଏ ବୈଦ୍ୟ ଛର ଅଘ ପକାଅ ସଂହାରି । ୪ ।

ମନରେ କର ଭଜନ । ଗୁରୁପାଦେ ଲଗା ଧ୍ୟାନ । ସୁଗୁରୁଙ୍କୁ ସେବିଲେ ଶୁଦ୍ଧ । ପାଇବୁ ପରମ ଜ୍ଞାନ । ଘୋଷା ।

ପରମ ସଙ୍ଗରେ ଜୀବ କରୁଅଛୁ ନିତ୍ୟେ ଭାବ । ପବନକୁ ସ୍ଥିତ କର ସ୍ଥିତ ହେବ ଏ ଜୀବନ । ୨ । ଗୁରୁ ଉପଦେଶ ଯେବେ ନିଷ୍ଠେ ହେବ ତୋ ଚେତନ । ପରମକୁ ଭାବ ଶୁଦ୍ଧ । ବ୍ରହ୍ମକୁ ତୁ ହୃଦେ ଚିନ୍ତ । ୩ । ସକଳ ଜୀବ ସମାନ । ବାଇମନ ହୃଦେ ଚିନ୍ତ । ଭାବ ବୈଦ୍ୟନାଥ ବୋଲେ । ହେବୁ ଯେ ଶୁଦ୍ଧ କାରଣ । ୪ ।

---

ବଂଶୀବଟ ପାହିଲା ଏଥର ହେ ପ୍ରାଣେଶ୍ୱର । ଘୋଷା ।

ଉଠ ଉଠ ପ୍ରାଣେଶ୍ୱର । ନିଶି ପାହିଲା ଏଥର । କୁକୁଟ ଡାକ ପରଖର ହେ । ୧। କାକ କୋକିଳର ସ୍ୱନ । ଡାହୁକ କରେ ଗର୍ଜନ । ଶଙ୍ଖବାଜେ ଦେବସ୍ଥା ଭାଳ ହେ । ୨ । ଗୋପାଳ ଯୋଏ ଗଲେ । ଗୋପେ ସ୍ତ୍ରୀଯାଇ ମିଳିଲେ । କହେ କହେ ଯେନିଣ ଦୁଧ ଭାର ହେ ॥ ଚନ୍ଦ୍ରସେଣା ଗୋଷ୍ଠୁ ଆସି । ପହଁଚିବ ଶେଷ ନିଶି । ଦେଖିଲେ କଳେବର ହେ । ୪ କହେ ବୈଦ୍ୟନାଥ ଗ୍ଧର । ଚନ୍ଦ୍ରାବଳୀଙ୍କ ବଗର ଉଠ ନାଥ ମୁଖେ ଦିଅ ନିର ହେ । ୫ ।



ନମଇଁ ନୃସିଂହ ଚରଣ । ସେ ନାରାୟଣ । ଈଶ୍ୱରଙ୍କୁ ଭାବିଲେ ଯେ ପାଇବ ସେ କାରଣ । ଘୋଷା ।

ଅରୂପରେ ଥାଇ ଛନ୍ତି । ଭାଗବତ ନାମ ବହି । ଦେବତାଯେ ନ ପାବନ୍ତି ତାହାର ମାୟା ଜାଣି । ୧ । ଭାବରୁ ଯେ ଭାଗବତ । ଭାବି ହୁଅ ଯେ ମୁକତ । ଭାବିଲେ ଯେ ଭଗବାନ ପାଇବ ସେ କାରଣ । ୨ । ଭଗବାନ ନାମ ଯାର । ବିଶ୍ୱବୀଜକୁ ବାହାର । ବ୍ରହ୍ମା ବିଷ୍ଣୁ ଶିବ ଛନ୍ତି ହୋଇଲେ ଉତପନ । ୩ । ବ୍ରହ୍ମା ସୃଜିଲେ ସଂସାର ବିଷ୍ଣୁ ପାଳି ମହୀଭାର । ଶିବ ଛନ୍ତି ବସିଣ ଯେ କଲେ ଛନ୍ତି ଯୋଗଧ୍ୟାନ । ୪ । କହଇ ଯେ ବୈଦ୍ୟନାଥ ଶ୍ରୀଗୁରୁ ଚରଣେ ଚିତ । ନ ଯେଲ ଯେ ମୋର ଦୋଷ । ଶ୍ରୀଗୁରୁଙ୍କ ପାଦେ ଧ୍ୟାନ । ୫ ।

ଭଜ ମନ ହେ ଭଜ ଅବନା ଅକ୍ଷର । ଅବନା ଭଜିଲେ ଅରୂପ ଦେଖିବୁ । ଅନାମରେ ମନ କର ତୁ ସ୍ଥିର । ଘୋଷା ।
ଅରୂପ ମଧ୍ୟରେ ରୂପ ତୁ ଦେଖିବୁ । ଧ୍ୟାନକୁ ରଖିଲେ ତାଙ୍କ ପୟର । ମନ ସ୍ଥିର କରି ଧର ଏକାକ୍ଷର । ଦୟା ଯେ କରିବେ ସେ ନିରାକାର ॥ ଏକରୁ ସେ ହୋଇ ତ୍ରୀଗୁଣ ହୁଅଇ । ସତ ରଜ ତମ ଜାଣ । ସତରୁ ସଂସାର ସୃଷ୍ଟି ଯେ ନିରାକାର । ହେଲେ ବ୍ରହ୍ମା ବିଷ୍ଣୁ ଯେ ମହେଶ୍ୱର । ୩ । ତ୍ରୀକୂଟ ସନ୍ଧିରେ ସୁମନର ଦ୍ୱାର । ତହିଁ ବହେ ତିନିଧାର । ସେ ଧାରକୁ ଭଜ ପାଇବୁ ଆତ୍ମାଜ । ସେ ସ୍ଥାନରେ ବାଜେ ନିରନ୍ତର । ୩ । ହରର ଯେ ସ୍ଥାନ ଷୋଳ ସ୍ୱର ଜାଣ । ଶ୍ରୀଧର ରହନ୍ତି ତାଙ୍କ ସଙ୍ଗର । ଶ୍ରୀଧରକୁ ଭଜ ଛାଡ ତମ ରଜ । ତୁ ହରୁ ନିଷ୍ଠ ବୈକୁଣ୍ଠ ପୁର । ୪ । ଅମଳ ପୁରରେ ଶ୍ରୀଗୁରୁଙ୍କ ସ୍ଥାନ । ସରଣ ପଶ ଯା ତାଙ୍କ ପାଦରେ । ଭାବି ବୈଦ୍ୟନାଥ ଯେବ ଅନ୍ତର୍ଗତ ଶ୍ରୀଗୁରୁଙ୍କ ପାଦେ ଶରଣ ତାର । ୫ ।

=୦=

କହେ ମନ ରାଇତନ କୃଷ୍ଣ ପାଦେ ଲଗା ଧ୍ୟାନ । କରୁଣା କର ନାଥନ୍ତି । କରୁଥାଇ ନିତ୍ୟେ ଧ୍ୟାନ । ୧ । ଖଣ୍ଡିଥିଲେ ଗୁରୁପାଦେ କ୍ଷଣେ ନପଡେ ପ୍ରମାଦ । ଖଣ୍ଡୋଙ୍ଗ ଧର ନାଥଙ୍କୁ ଚିହ୍ନନାଲେ ଧର ମନ । ୨ । ଗୁରୁ ଗୋବିନ୍ଦଙ୍କ ନାମ ଗୁମ୍ଫାରେ କର ଭଜନ । ଗୁରୁ କୃପା କଲେ ଗୁପ୍ତ ଗୁପ୍ତରେ ରଖିବୁ ଧନ । ୩ । ଘନକାଳେ ଘନ ରୂପ ଘଟେଣ ଦଶେ ସ୍ୱରୂପ । ଧୂମତ ଲୋଚନ କରି ଘଟରେ କର ଦର୍ଶନ । ୪ । ଊର୍ମି ଧୂମ ଯୋଗ ଜାଲା ଉଇଛୁ ଚନ୍ଦ୍ରଶ କଲା । ଊର୍ମି ମୁଖେ ଦୃଷ୍ଟି ଦେଇ , ଉପରକୁ ଲଗା ଧ୍ୟାନ । ୫ । ଚକ୍ରଧରଙ୍କ ଆଜ୍ଞାରୁ, ଚକ୍ରବ୍ୟୁହ ତା ଅଶ୍ରମ । ଚିତ୍ତେ କରି ଦୃଢ଼ଧ୍ୟାନ । ଚରଣକୁ ଲଗା ମନ । ୬ । ଛତ୍ରିଶି ପରେ ବାସ, ଛନ୍ଦେ ବଜେ ଦେବସ । [illegible] କର ଗୁପ୍ତ ଧ୍ୟାନ । ଯଣକେ ହେବ ଚେତନ । ୭ । ଜଗବନ୍ଧୁ ଜଗନ୍ନାଥ । ଯଶୋଦାଙ୍କର ସେ ସୁତ । ଜଗନାଥଙ୍କୁ ଯତ୍ନେ କର

ଧ୍ୟାନ । ୮ । ଝିମିଟିଝେ ନ ପଡ଼ ତୁହି । ଝୀଲନାଲେ ଧର ଯାଇ ।
ଝରମୁଖେ ବସି ତୁହି । ଝର କର ତୁହି ପାନ ॥ ଈଶ୍ୱରଯଜନ ନାଥିଙ୍କୁ
ଈଶ୍ୱରନ୍ତରେ ଭଜ ତାଙ୍କୁ । ଈଶ୍ୱରେ ତୁ ଧ୍ୟାନକର । କଷ୍ଟେ ପାଇବୁ
ବହନ । ଝୋପ ଉଡ଼ିଗ୍ର ମଧ୍ୟର । ଝେଟ୍ଟ ଭିତରେ ଧର । ଝାଦ୍ଧିଣ
ତୁ ଲକ୍ଷ୍ୟ କର । ଝେଦ୍ଧିବେ ସେ ଭଗବାନ । ୧୦ । ଠାକୁର ନନ୍ଦଙ୍କ
ସୁତ । ଠଣେ ହେଲେ ଗୋପେ ଖ୍ୟାତ । ଟିକେ ଭଜଣ ବୈଦ୍ୟନାଥ ।
ଠାକୁରଙ୍କ ପାଦେ ଧ୍ୟାନ । ୧୨ ।

---

ଦେଖ ସଖୀ ଆଜ ବଣ୍ଣୁଅଛୁ ତେଜ । କଦମ୍ବ ମୂଳରେ ବସିଛୁ ।
ପୟର ନୂପୁର କଣ୍ଠରେ ଘୁଙ୍ଗୁରୁ । ଝୁଣୁଝୁଣୁ ହୋଇ ବାଜୁଛୁ ॥
ପୀତବସ୍ତ୍ର ଖଦ ପିନ୍ଧିଛୁ ଆସ୍ତୁଦ । ନେତ ଆଭରଣ ହୋଇଛୁ ।
ମସ୍ତକରେ ମଣି । ଦିଶେ କେତେ ଠାଣି । ମୟୁର ଚୂଳକୁ ଖୋସିଛୁ ॥
ଦେଖ ମେଘମାଳ । ବଢ଼ନ୍ତି ପ୍ରବଳ । ଆକାଶ ଝଡ଼ିକି ପଡ଼ୁଛି ।
ଘନକାଲେ ଘନ କେତେ ଶୋଭାବନ । ଚପଲା ସଙ୍ଗତେ ଖେଳୁଛ
। ୩ । ଏରୂପକୁ ଦେଖି ମନେ ମୋର ସୁଖି । ମଦନ ବାଣ ବି
ନ୍ଧୁଛି । ମାରସରେ ମରି ଯାଉଛି ମୁଁ ସହି । ଜାତିକୁଳ ଲଜ୍ଜ୍ୟା
ହେଉଛି । ୪ । ସତେ କି ଏ ଧନ ରଖିବେ ଜୀବନ । କଲଙ୍କ ଘୋଷ
ଦେବକି । ନଣଦ ଜାଲାତ । ଅତି ଅଲୌକିକ । ଦୁଃଖି ବୈଦ୍ୟନାଥ
ଗାଉଛି । ୫ ।

—୦—

ଜୟ ସନାତନ ହେ । ଅନାଦି ବ୍ରହ୍ମ ବିଧାନ । ପତିତ ପାବନ ହେ
ଦୁଃଖ ନାଶନ ଦୁଃଖୀ ଲୋକଙ୍କର ଧନ । ଘୋଷା ।

ମନ୍ଦର ଧରିଣ କ୍ଷୀରୋଦ୍ର ମନ୍ଥନ ବାସୁକି ରଜ୍ଜୁ କରିଣ ।
ମୋହିନୀ ବେଶେଣ ଅମୃତ ପରଶି ଅସୁର କଲ ବିଧନ । ୧ ।
ରାମ ଅବତାରେ ଅଯୋଧ୍ୟା ନଗରେ ଦଶରଥଙ୍କ ନନ୍ଦନ ।
ବନବାସ କଲ ସୀତା ସଙ୍ଗେ ନେଲ ବଧିଲ ଲଙ୍କା-ରାବଣ ।୨।

ପ୍ରହ୍ଲାଦ ଛଳେ ସ୍ତମ୍ଭେ ବିଜେ କଲ ହିରଣ୍ୟ କଲ ନିଧନ ।
ଭାରତ ଯୁଦ୍ଧରେ ପାଣ୍ଡବ ସଙ୍ଗରେ ବଧିଲ ଯେ କୁରୁ ସୈନ୍ୟ ।୩।
ଅବନ୍ତୀ ନଗରେ ଋଷିଙ୍କ ମଠରେ ବିଦ୍ୟା କଲ କି ପଠନ ।
କାଳି ପୁରେ କାଳ ହେଲ ଆଦିମୂଳ ଗୁରୁପୁତ୍ର ଦେଲ ଦାନ ।୪।
ପଞ୍ଚାଳୀ ଆରତ ଶୁଣିଲ ଅଚ୍ୟୁତ ବସ୍ତ୍ର ଦେଲ ତତକ୍ଷଣ ।
ବଇଦ ଅର୍ଜିତ ଭାବୁଅଛୁ ମୁଢ ଦୟାକର ନାରାୟଣ । ୫ ।

—❋—

ନରହରି ହେ ଅନାଦି ବ୍ରହ୍ମ ହରି ।
ଦେଖ ପାରିବାର ଏ ଭବସଂସାରୁ ପାରି କର ଚକ୍ରଧାରି । ଘୋଷା ।
ବାରିରେ ଯେ କରି ପାରିକଲ ହରି ହରିକି ଦେଲି ଉଦ୍ଧାରି ।
ହରିକି ଯେପରି ନହିଲୁ ନାଶିଲ ବ୍ୟାଧକୁ ଦେଲ ସଂହାରି ହେ ।୧।
ପାର୍ଥ ହରି ଯୁଦ୍ଧ ବଢ଼ାଇ ପ୍ରମାଦ ନାଚିଥିଲ ଦିକ୍ ବାରି ।
ମୀନରୂପ ଧରି ବିଜେ କଲ ହରି ପାର୍ଥବମାନ ଉଦ୍ଧାରି ହେ । ୨ ।
ମାର୍କଣ୍ଡ ଋଷି ଯାଉଥିଲେ ଭାସି ରଖିଲ କର ପ୍ରସାରି ।
ଖାଣ୍ଡବର ବନ ଦହିଲା ଅର୍ଜୁନ ରକ୍ଷା କଲ ବଂଶୀଧାରି ହେ । ୩ ।
ଗରୁଡ ଆତଙ୍ଗ ଶୁଣିଲ ରଥାଙ୍ଗ ରକ୍ଷା କଲ କରେ ଧରି ।
ବଇଦ ଆର୍ଜିତ ଭାବୁଅଛୁ ଚିତ୍ତ ଲଭୁ ପାଦକର ହରି । ୪ ।

—o—

ନାହିଁ ନାହିଁ ତ, ରାମଚନ୍ଦ୍ର ପରି ଜଣେ ସାମନ୍ତ ।
ସପ୍ତଦ୍ୱୀପରେ ଯେ କୀରତି ରଖିଲେ ଦୁଷ୍ଟଙ୍କୁ ସେ ନାଶ କଲେତ । ପଦ ।
ପିତା ସତ୍ୟପାଳି ବନବାସ କଲେ ପଞ୍ଚବଟୀରେ ରହିଲେତ ।
ଦଶଶିର ନାଶି କୀରତି ରଖିଲେ ବିଭୀଷଣେ ରାଜ୍ୟ ଦେଲେ ତ । ୧ ।
ପ୍ରଥମ ବୟସେ ତାଡ଼କାକୁ ବଧିଲେ ଅହଲ୍ୟାକୁ ମୁକ୍ତି ଦେଲେତ ।
ଜନକ ପୁରରେ ଶିବଧନୁ ଭାଙ୍ଗି ବଇଦେହୀ ବିଭା ହେଲେତ । ୨ ।
ଦ୍ୱାପର ଯୁଗରେ କୃଷ୍ଣ ଅବତାରେ କଂସକୁ ସେ ନାଶ କଲେତ ।
କାଳିନ୍ଦୀ ହ୍ରଦରେ କାଳୀଙ୍କ ମନ୍ଦରେ ଲକ୍ଷେଶ୍ୱର ପଦ୍ମ ଦେଲେ ତ ॥

ପ୍ରଥମ କଳ୍ପରେ ନଦୀୟା ଜବରେ ଗୌରାଙ୍ଗ ନାମ ବହିଲେ ତ ।
ଦ୍ୱିତୀୟ କଳ୍ପରେ ବୌଦ୍ଧ ଅବତାରେ ବଡ଼ ଦେଉଳେ ରହିଲେତ ॥
କ୍ଷେତ୍ରର ମହିମା କି ଦେବା ଉପମା ପଞ୍ଚକୋଶି ସୀମା ତହିଁ ତ । କହେ
ବୈଦ୍ୟନାଥ ସେହି ଅନ୍ତର୍ଗତ ଜଗବନ୍ଧୁ ପାଦେ ଧାଇତ ।୬ ।

—o—

ଚିନ୍ତାମଣି ହେ, ଚିତ୍ତେ ଦୟାକର ମୋତେ ।
ଚିନ୍ତାଚିତ୍ତେ ଅନୁକ୍ଷଣେ ଦହୁଅଛି ହୃଦଗତେ । ପଦ ।
ପ୍ରହ୍ଲାଦ ଦୈତ୍ୟବୀର ଚିନ୍ତା କଲା ତୋ ପୟର
ସ୍ତମ୍ଭରେ ତାରପଥର ଭସାଇଲେ ଅରମ୍ଭିତେ । ୧ ।
ବନେ ଚିନ୍ତିଲା ମୃଗଣୀ ରଖିଲ ହେ ଚକ୍ରପାଣି
ବ୍ୟାଧକୁ ବତ୍ସଳ ହେଲେ ବଞ୍ଚାଇଲେ ତାର ସୁତେ । ୨ ।
ବାରଣ ଚିନ୍ତା କଲା ଶୁଣିଲ ହେ ଆଦିମୂଳ
ଯେଣି ରହି ନାହିଁ ନହି କୀର୍ତ୍ତି ରଖିଲ ଜଗତେ । ୩ ।
ଇଦୁଅର୍ଜିତ ଭାବିଲା ଦୟାକଲ ତକା ତୋଳା
ଦଣ୍ଡି ବଳଙ୍କୁ ଲାଗିଲ ପହ୍ନି ଦେଲ ଭାର ସଥେ । ୪ ।
ଦ୍ରୌପଦୀ ଆତଙ୍କ କାଳେ କୋଟି ବସ୍ତ୍ର ଦେଲ ହେଲେ
ବୈଦ୍ୟନାଥ ଭାବି ବୋଲେ ଦୟାକର ହୃଦ ଗତେ । ୫ ।

—o—

ତମ୍ବୁରୁ ଷୋଳ ଅକ୍ଷର ଷୋଳବର୍ଣ୍ଣ ଅଟେ ତାର ।
ଶେତ ପୀତ ଲୋହୀତବେ ବର୍ଣ୍ଣ ଅଟଇ ତାହାର । ପଦ ।
ଡାକ୍ତଣୀ ଯେଉ ଗୁହାଁଲେ ଅରୂପ ଦେଖିବୁ ଭଲେ
ସୀଗୁଣକୁ ଛାଡ଼ କରି ତତ୍ତ୍ୱ ପାଞ୍ଚ ମନ କର । ୧ ।
ଦେବତା ଦେଉଳେ ଥାଇ ଧ୍ୟାନରଖ ମନ ବାଇ
ନିରଞ୍ଜନ ନିରାକାର ପଦ୍ମପାଦେ ଆଶ୍ରେ କର । ୨ ।
ପୁଣ୍ଡାବନ୍ଧେ ଯାଇଁ ବାସ ବାରେ ବାରଣରେ ଘୋଷ
ରହିଲେ ହୋଇବ ପାରି ଭବ ଭଣେ ବୈଦ୍ୟ ଛାର । ୪ ।

ବାଇମନ ଗୁରୁ ବଚନ ଧେନ । ଗୁରୁ ଅଜ୍ଞା ମାନଲେତ ହେବ ଚେତନ । ଘୋଷା ।

ମଣି ମନ୍ତ୍ରକେ ତାଲ । ଯ ଅଟେ ସେ ଜୀବନ ।
ର ରାଧିକା ନାମ କୃଷ୍ଣ ସଙ୍ଗେଣ । ୧ ।
ଲଥ ଯେ ଲମ୍ବୁଧ ବଙ୍କନାଲେ ବେହାର ।
ଶିବ୍ ମୁନା ଚଟେ ଲଗାଅ ଧ୍ୟାନ । ୨ ।
ଶ ସ୍ନି ବ.ଅଟେ ଚନ୍ଦ୍ର ଶିଷୁମୁନାରେ ରହ୍ ।
ହରଣୀରେ ଗଙ୍ଗା ଝରପଡଣ । ୩ ।
କ୍ଷଣେ ବହି ନାମକୁ ଭଜଗୁରୁ ବ୍ରହ୍ମକୁ
ଭାବ ବୈଦ୍ୟନାଥ ଶ୍ରୀଗୁରୁ ବ୍ରହ୍ମ । ୪ ।



ମଧୁସୂଦନ ବ୍ରାହ୍ମଣ ହାଟରେ ଯାଇ ମିଳଇ ।
ଗୋରୁ ହାଟରେ ଖୋଜଲା ଗାଈ ସନ୍ଦେସ ନ ପାଇ । ଘୋଷା ।

ପାନ ସୁପାରି କିଣିଣ ଗଞ୍ଜାଇ କିଣିଲା ପୁଣ । ଛେଳି ହାଟରେ ମିଳିଲା ଛେଳିକି ଛେଳ ମାଗଇ । ୧ । କାନ୍ଧପାଖ ବିପ୍ରବର ଛେଳି ମାଗେ ପାଇ କର । ଛେଳିମନେ ବିଚାରିଲା ପଗଲା ବିପ୍ର ଅଟଇ । ୨ । ଏହାକୁ ଭୁଲାଇ ଦେବ ପଇସାଟି ମୁହିଁ ନେବ । ଏମନ୍ତେ ମନେ ବିଚାରି ଛେଳି ମାପି ଦେଲା ତହିଁ । ୩ । ବ୍ରାହ୍ମଣ କାନ୍ଧରେ ଦେଲା ଘେନି ବିପ୍ର ଚାଲିଗଲା । କିଛି ଦୂର ଗଲା ଚାଲି ଛେଳି ଦେଖେ ଛେଳି ନାହିଁ । ୪ । ଦେଖି ବୁଢ଼ା ମୂର୍ଚ୍ଛାଗଲା ଜ୍ଞାନହାରିଣ ପଡ଼ିଲା । ହାଟ ଲୋକେ ଆସି ତହିଁ ବୁଢ଼ାକୁ ତୋଳି ଧରଇ । ୫ । ବୁଢ଼ା ପାଇଣ ଚେତନ ସମସ୍ତେ ବୋଲେ ବଚନ । ବୁଢ଼ା ବୋଲେ ଶୁଣ ଭାଇ କାହୁଁ ସେ ବିପ୍ର ମିଳଇ । ୬ । ଛେଳି ନଳିଏ ସେ ନେଲା ପଇସାଟି ମୋତେ ଦେଲା । ଏକ୍ଷଣି ଗଲାକ ଚାଲି ଦେଖିଲିତ ଛେଳି ନାହିଁ । ୭ । ଶୁଣି ହାଟ ଲୋକେ ଗଲେ ବ୍ରାହ୍ମଣ ଆଗେ ମିଳିଲେ । ବୋଲେ ବିପ୍ର ଶୁଣ ଭୁହ ଛେଳି ଜଣା ଅଛୁ ହୋଇ ॥ ଦେବୁ ଭରଣା କହିଣ ଫେରି

ଚାଲ ହେ ବ୍ରାହ୍ମଣ ! ଚହୁଁ ବିପ୍ର ଫେରିଗଲା ଘଣ୍ଟରେ ତେଲ ଢାଳଇ ॥
ଦେଖିଣ ବୁଢ଼ା ଆନନ୍ଦ ମୁଖ ତା ପୂର୍ଣ୍ଣମିଚନ୍ଦ୍ର । ଗୀତେ ବୈଦ୍ୟନାଥ
କହେ ହରିନାଥ ପାଦେ ସରଣ । ୧୦ ।

—:o:—

ଅହେ ହରିନାଥ ଫେଡ଼ ମୋ ଆରତ । ଜଣାଣ କରୁଛି ମୁହିଁ ।
ମୋପରି ଯେ ଦୁଃଖି ସଂସାରେ ନ ଦେଖି । ମୋ ଅର୍ତ୍ତି ଶୁଣ ଗୋସାଇଁ ।
ଘୋଷା ।
ଜଗତ ଠାକୁର କପଟ ମୋଡ଼ାର କରୁଅଛ କାହିଁପାଇଁ ।
ଅପୂର୍ବୀରେ ପୁଅ ପାଇଥିଲି ମୁଁ ତ । କ୍ଷୀର ବିନା ହତ୍ୟା ହୋଇ । ୧ ।
ତୁମ୍ଭ ଆଜ୍ଞା ପାଇଁ ମେଳା ବିଧି ଦେଇ, ବଛି କାନ୍ଧିରେ ଜଳଇ ।
ହରିନାଥ ବୋଲଇ, ବିପ୍ର ଶୁଣ ବୁଦ୍ଧି । ତୋଠାରେ ଗାମୁଛା ରହି । ୨ ।
ବିପ୍ର ବୋଲେ ଶୁଣ ଦୁଃଖି ଯେ ବ୍ରାହ୍ମଣ, ଗାମୁଛା ମାଗି କରିଛି ।
ଗାଈ ଟେର ନେଲା, ଗାମୁଛା ଜଳିଲା, କୁଟୁମ୍ବ ଉପାସେ ରହି । ୩ ।
କୁଟୁମ୍ବ ଜଞ୍ଜାଳ ମୋତେ ହେଲା କାଳ, ଉଷାକର ଗ୍ରବଗ୍ରାହୀ ।
ହରିନାଥ ବୋଲଇ ବିପ୍ର ଶୁଣ ବୁଦ୍ଧି କୁଟୁମ୍ବ ସୁଖରେ ରହି । ୪ । ଧନହିଁ
ମିଳିବ ସମ୍ପଦ ହୋଇବ, ବିପ୍ର ମେଳା ଦିଅ ବୁଦ୍ଧି । ମେଳା
ବିଧିଦେଲା ବିପ୍ର ଘରେ ଗଲା । ଏ ଗୀତେ ବଇଦ କହି । ୫ ।

—*—

ଅହେ ଗଙ୍ଗାଧର ବୀରଞ୍ଚି ଶଙ୍କର । ଦୁଃଖ ଜଣାଉଛି ମୁହିଁ ।
ଗୋଅଗ ମଣ୍ଡୁଳି, ବାହାନ ପୃଷ୍ଠରେ । ବିରାଜ କରିଣ ରହି । ଘୋଷା ।
ପତିତପାବନ ତ୍ରିଶୂଳ ଧାରଣ, ବିଧାତା ନାମ ବୋଲାଇ ।
ଦଶଶିର କାଟି ସ୍ଥାପନ ବାମୀ, ମୁଖରେ ବେଦ ଜନ୍ମାଇଁ । ୧ ।
ମୋର ଅର୍ତ୍ତି ଶୁଣ ପାର୍ବତୀ ରମଣ, ଜଗତ ସର୍ଜନା ସାଇଁ ।
ପୁଅ ମୋର ହତ ଦିଅଲୁ ହରିନାଥ, ସର୍ବ ଦୋଷ ମୁଁ ମାଗଇ । ୨ ।
ନ ଜାଣିଣ ମୁହିଁ, ଦୋଷ କରିଛଇ, ଦୟାକର ପୂର୍ଣ୍ଣଦେହୀ ।
ଜୀବଦାନ ଦିଅ ପୁତ୍ରକୁ ବଞ୍ଚାଅ, ପଞ୍ଚମେଳା ଦେବୀ ମୁହିଁ । ୩ ।

ରଜାର ଅରଜ ଶୁଣିଣ ଶ୍ରୀନାଥ, ଦୟାର କଲେ ଗୋସାଇଁ ।
ନଦୀକୂଳେ ଗଲେ ସ୍ତ୍ରୀମାନେ ମିଳିଲେ, ପୁତ୍ର ଜୀବଦାନ ଦେଇ ।୪ ।
ମାଗିଲେ ଯେ ମେଳା, ଉଠି ରାଜବାଳା, ଆପଣା ଗୃହକୁ ଯାଇ ।
କହେ ବୈଦ୍ୟେଶ୍ୱର ରାଜାଙ୍କ ମନ୍ଦିର, ମେଳା ଉତ୍ସବ କରାଇ ।୫ ।



ଧନୀ ସୌଦାଗର ସେ ନାବ ଚଳାଏ ଦରିଆର । ନାବକୁ ନେଇଣ କୂଳରେ ଲଗାଇ । ମେଳା ଶୁଣି ଗଲା ତତପର । । ଘୋଷା ।

ସର୍ବ ଲୋକେ ବସି ମେଳାଠାର । ମେଳା ଦେଖି କରି ଆନନ୍ଦର । ଧନୀ ସୌଦାଗର ତହିଁ ସେ ମିଳିଲା ଶୁଣି ମନ ବଡ ଖୁସି ତାର ।୧। ଏ କି ମେଳା ମୋତେ କହ ଦେଖ କେଉଁ ଦେବତା ସେ କେଉଁ ଦେଖି । ଶୁଣିବା ଶ୍ରଦ୍ଧା ମନରେ ମୋହର । କହ ଦେଖ ତୁମ୍ଭେ ଶ୍ରୀମୁଖର ।୨। ସର୍ବେ ବୋଲେ ଧନୀ ତୁମ୍ଭେ ଶୁଣ । କହୁଛୁ ମେଳାର ସେ ବିଧାନ । ରଜାର ପୁତ୍ରକୁ ତକ୍ଷକ ଦଂଶିଲା । ବସି ଦେଉଥିଲୁ ସ୍ତ୍ରୀମାନର ।୩। ଶ୍ରୀନାଥ ତାଙ୍କୁ ଦୟା କଲେ ମୃତ ବାଳକକୁ ବଞ୍ଚାଇଲେ । ଆମ୍ଭେ ସର୍ବେ ମିଳି ମେଳା ଭିଆଇଣ ଶ୍ରୀନାଥ ଜପୁଛୁଁ ହୃଦୟର ।୪। ତା ଶୁଣି ଧନୀ ଆନନ୍ଦ ହେଲା; ପାଶ୍ୱମେଳା ଦେବ ସେ ମାଗିଲା । ସାତ ନୌକା ମୋର ଗୃହରେ ମିଳିଲେ ଆଗେ ମେଳା ଦେବୀ ସତ୍ୟ ମୋର ।୫। ଗୃହରେ ଯାଇଁଣ ସେ ମିଳିଲା । ପ୍ରଭୁଙ୍କ ମେଳା ସେ ପାଶୋରିଲା । ସାତ ନୌକା ତାର ଜଳରେ ବୁଡିଲା ଉଡିଗଲା ତାର ହଂସାଘର ।୬। ପୂର୍ବେ ମୁଁ କଳ୍ପଣା କରିଥିଲି । ପ୍ରଭୁଙ୍କ ମେଳାକୁ ପାଶୋରିଲି । ଦୟାକର ପ୍ରଭୁ ଥାହେ ତ୍ରିପୁରନାଥ ॥ ଆଗେ ମେଳା ଦେବି ତୋହଠାର ।୬। ଏମନ୍ତ କଳ୍ପଣା ଧନୀକଲା । ସାତ ନୌକା ତାର ସେ ଉଠିଲା । ଗୃହରେ ଧନ ସେ ରଖିଣ ବଇଦ କରଇ ନମସ୍କାର ।୮।



ମକୁନ୍ଦ ମାଧବ ହରି ମଣିପୁରେ ବିଜେ କରି ।
ମୋ ଦୁଃଖ ନ ଗଲା ହରି ମାୟାରେ ଯାଉଛୁ ମରି । ଘୋଷା ।

ଜନ୍ମକାଲେ ଆସିଥିଲ ଜ୍ୱର ଅବସ୍ଥା ମୁଁ ହେଲ ।
ଜଗବନ୍ଧୁ କର ପାରି ଜଞ୍ଜାଳରେ ଗଲି ସରି । ୧ ।
ରାଜୀବ ଲୋଚନ ହରି ରହୁ ଖଟେ ବିଜେ କରି
ଭାବୁଛି ମୁଁ ନାମଧରି ଘୋର କଷ୍ଟୁ କର ପାରି । ୨ ।
ଲମ୍ବୋଦର ମାୟାଧର ଲହରୀରୁ କର ପାର ।
ଲାବଣ୍ୟନିଧି ମୁରାରି ଲୀଳାରୁ ତୁ କର ପାରି । ୩ ।
ବଉଦ୍ଧ ରୂପରେ ହରି ବଡଦେଉଳେ ବିଜେକରି ।
ବହୁତ ଭରସା କରି ବାରେ ଥିଲି ଆଶ୍ରାକରି । ୪ ।
ଶ୍ରୀଧର ଆହେ ମୁରାରି ଶ୍ରୀ ଚରଣେ ଆଶ୍ରାକରି ।
ଶରଣ ରଖ ହେ ହରି ସଂସାରରୁ କର ପାରି । ୫ ।
ସତ୍ୟ ପୁରୁଷ ବୋଲିଣ ସତ୍ୟେ ମୁଁ ଗଲି ଶରଣ
ଶରଣ ରକ୍ଷଣ ହରି ସତେକି ହୋଇବି ପାରି । ୬ ।
ଶଙ୍କର୍ଷଣ ହେ ମୁରାରି ଶଙ୍ଖ ସଙ୍ଗେ କର ପାରି
ସମସ୍ତ ନାହିଁ ମୋହରି ଶରଣ ରଖ ହେ ହରି । ୭ ।
ହରିହର ନାମ ହରି ହରଷେ କରନ୍ତୁ ପାରି ।
ହରିନାମ ଧରି ମୁହିଁ ହେଉଅଛୁ ଏତେ ସରି । ୮ ।
କ୍ଷମାକର ହେ ମାଧବ କ୍ଷିତିରେ ଯେ ଦିଅ ଠାବ ।
କ୍ଷୁଦ୍ର ବୈଦ୍ୟନାଥ ବୋଲେ କ୍ଷିତିରୁ ଯେ କରପାରି । ୯ ।

=○=

ଦିନ ବାନ୍ଧବ ହେ ଡ଼ାକିଲେ ନ ଶୁଣ କାହିଁକି ।
ତୁମ୍ଭେ ଚକ୍ରଧର ଚକ୍ରକୁ ପେଷିଣ ଗଜ ଦେଲ ମୁକୁଳାଇକି । ପଦ ।
ବନରେ ମୃଗୁଣୀ ଚନ୍ଦ୍ରାବଳୀ ପୁଣି
ବ୍ୟାଧରୁ ବଞ୍ଚିଲ ଚହିଁକି ।

ପ୍ରହଲ୍ଲଦ ଦୈତ୍ୟ ତୁମ୍ଭଙ୍କ ସେବକ
ଇନ୍ଦ୍ର ପଦ ତାକୁ ଦେଲକି ।୧।
କୃଷ୍ଣ ଅବତାରେ ଦ୍ୱାପରେ ଯୁଗରେ
ବିଦ୍ୟା ପଢ଼ି ଯାଇଥିଲ କି ।
ଗୁରୁପତ୍ନୀ ତାରି ଶଙ୍ଖାସୁର ମାରି
ଗୁରୁ ପୁତ୍ର ଆଣି ଦେଲ କି ।୨।
ତୁମ୍ଭେ ନାରାୟଣ ମୋ ଡାକ ନ ଶୁଣ
ମୋ ଦୋଷ କ୍ଷମା ନୋହିଲା କି ।
ଭକ୍ତ ବୈଦ୍ୟନାଥ ପ୍ରଭୁପାଦେ ରତ
ମୋ ଦୁଃଖ ନ ଫେଡ଼ କାହିଁକି ।୩।

---

ଡାକୁଛି ଭଞ୍ଜନାଶନ ଡାକ ଶୁଣ ବାଇମନ ।
ଡାକକୁ ଶୁଣିଲେ ତୁହି ଭୟେ ପଳାଇବ ଯମ । ଘୋଷା ।
ଚମ ବୁଦ୍ଧିକି ତୁ ଛାଡ଼ ଢାଲେ ଖାଇବୁ ତୁ ମାଡ଼
ଚଳ ହଳ ପୁରୁଷଙ୍କୁ ଚାଲେ ତୁହି କର ଧ୍ୟାନ ।୧।
ଅନନ୍ତ ପୁରୁଷ ଯେହି ଅରୂପରେ ଅଛି ରହି
ଅଣସୁନ୍ଦରେ ତୁ ଭଜ ଅରୂପକୁ କର ଧ୍ୟାନ ।୨।
ବୈକୁଣ୍ଠରେ କର ଧ୍ୟାନ ତ୍ରିବେଣୀଧାରରେ ଜାଣ
ତ୍ରିଗୁଣ କାଟିଣ ତୁହି ତ୍ରିବେଣୀରେ କର ସ୍ନାନ ।୩।
ଥିରକର ପାଞ୍ଚମନ ସ୍ଥିର ନୁହେ ଏ ଜୀବନ
ଥକାଘରେ ରହିମନ ଥିରେ ତୁହି କରଧ୍ୟାନ ।୪।
ଦାମୋଦର ପୁରୁଷଙ୍କୁ ଦମ୍ଭରେ ଭଜ ତାହାଙ୍କୁ
ଦରିଦ୍ର ଅବସ୍ଥା ତୋର ବନେ ଘୁଞ୍ଚିଯିବ ଜାଣ ।୫।
ଧ୍ୱନିକି ଲଗିଣ ତୁହି ଧ୍ୟାନକରି ମନବାଇ
ଧ୍ୟାଇ ଗୁରୁପାଦେ ସେବ ଧ୍ୟାନେ ପାଇବୁ କାରଣ ।୬।

ନିରଞ୍ଜନ ନିରାକାର　　ନିତ୍ୟ ସେବ ତା'ପୟର
　　ନିତ୍ୟ ଧ୍ୟାନ ଲଗାଇଣ ନିରନ୍ତରେ ସେବ ମନ । ୭ ।
ପଦ୍ମପାଦେ ଦେଇମନ　　ପଶ୍ଚିମେ ଲଗାଅ ଧ୍ୟାନ
　　ପରମ ପୁରୁଷଙ୍କୁ ତୁ ପରତେ କର ମନ । ୮ ।
ପୁଙ୍ଖାବନ୍ଧେ କର ଧ୍ୟାନ　　ଫେରିଣ ପଞ୍ଚ ଶରଣ
　　ଫୁଟିଛି କମଳ ପୁଷ୍ପ-ଫୁଲରେ ତୁ ଲଗାଅ ଧ୍ୟାନ । ୯ ।
ବାଙ୍କ ଭୂଲତାଙ୍କୁ ମନ　　ବଙ୍କନାଳେ କର ଧ୍ୟାନ
　　ତାରରେ ଲଗାଅ ମନ ବୁଝିବୁ ସକଳ ଜ୍ଞାନ । ୧୦ ।
ଭଗବାନ ପାଦେ ମନ　　ଭାବ ଭଜ ମୂଢ଼ମନ
　　ଭାବ ବୈଦ୍ୟନାଥ କହେ ଭଗାରି କର ଛେଦନ ।୧୧।



ଜୟ ନରହରି ନରସିଂହ ମୂରତି । କଶ୍ୟପ ସୁତ ବିଦାରି । ଘୋଷା ।
ଭାବିଲା ଯେ ପ୍ରହ୍ଲାଦ　　ସ୍ତମ୍ଭେ ହୋଇଲ ଭେଦ
　　ଦେଲ ତାହାକୁ ଉଦ୍ଧାର ।
ତା ଭକ୍ତି କଥା ଜାଣି　　ହେ ଦେବ ଚକ୍ରପାଣି
　　ଦେଲ ତାକୁ ଇନ୍ଦ୍ରପୁରୀ । ୧ ।
ପ୍ରହ୍ଲାଦ ତହିଁ ଗଲା　　ଇନ୍ଦ୍ରପୁରେ ମିଳିଲା
　　ଆଜ୍ଞା ତା ଦେଲ ଶ୍ରୀହରି ।
ଆପଣ ନିଜେ ଗଲ　　ପ୍ରହ୍ଲାଦ ସଙ୍ଗେ ନେଲ
　　ତାହାଙ୍କୁ ଦେଲ ଉଦ୍ଧାରି । ୨ ।
ବଇକୁଣ୍ଠ ପୁରରେ　　ମନଲୋଭ ସ୍ୱରରେ
　　ଦୟାକଲ ନରହରି ।
ଭକ୍ତ ବିନୟ ଜାଣି　　ହେ ଦେବ ଚକ୍ରପାଣି
　　ଦେଖାଇଲ ନିଜ ପୁରୀ । ୩ ।
ସେ କଥା କର୍ଣ୍ଣେ ଶୁଣି　　ଡାକୁଅଛି ମୁଁ ପୁଣି
　　ଦୟାକର ନରହରି ।

ଅପର୍ଣ୍ଣା ନାମ ତୁ ବହୁ । ଆଦ୍ୟ ବିଷ୍ଣୁ ନାରୀ ନାମ ବୋଲାଉ ଗୋ ।
ଅରୂପରେ ରହିଥାଅ ଜନନୀ ଗୋ । ୧୫ ।
ଉଗ୍ର ଚଣ୍ଡୀ ମୂର୍ତ୍ତି ତୋର । ଉପରେ ମାଇଲୁ ମହିଷାସୁର ଗୋ ।
ସର୍ବଦେବ ସ୍ତୁତ ତୋହର ଜନନୀ ଗୋ । ୧୬ ।
ଥାଉଁ ଥାଉଁ ମାତା ତୁହି । ଥରେ ମୋ ଆରତ ଶୁଣିଲୁ ନାହିଁ ଗୋ
ଥରେ ଦୟାକର ତୁହି ଜନନୀ ଗୋ । ୧୭ ।
ଦରିଦ୍ରଙ୍କ ମାତା ତୁହି । ଦରିଦ୍ର କାଙ୍ଗାଳୀ ତୁହି ପାଳଇ ଗୋ ।
ଦରିଦ୍ର ଦୁଃଖ ତ ଯାଇ ଜନନୀ ଗୋ । ୧୮ ।
ଧ୍ୱଜ ଯାଗ ତୋହଠାରେ । ଧ୍ୟାନ କରି ସାଧୁଛନ୍ତି ଘାଟରେ ଗୋ ।
ଧ୍ୟାନ ତୋ ପଦ୍ମପାଦରେ ଜନନୀ ଗୋ । ୧୯ ।
ନବଦ୍ୱୀପ ସ୍ଥଳୀ ଜଳେ । ନ୍ୟତରେ ଆଳତି ସନ୍ଧ୍ୟାକାଳରେ ଗୋ ।
ନାସ୍ତିଙ୍କ ଦର୍ଶନ ବେଳେ ଜନନୀ ଗୋ । ୨୦ ।
ପରମେଶ୍ୱରୀ ବୋଲାଉ । ପୂଜା ପାଇ ତୁହି ମନ୍ଦିରେ ରହୁ ଗୋ ।
ପୂଜାରିଙ୍କି ଧନ ଦେଉ ଜନନୀ ଗୋ । ୨୧ ।
ଫୁଲହାର ତୋର ଗଳେ । ଫୁଲ ଦେଉଥାନ୍ତି ମାଳକୁ ମାଳେ ଗୋ ।
ଫନ୍ଦାକରି ସନ୍ଧ୍ୟାକାଳେ ଜନନୀ ଗୋ । ୨୨ ।
ବାବାଜି ସାଧୁ ଅନେକ । ବସି ଧ୍ୟାଉଛନ୍ତି ତୋ ଗଙ୍ଗାଘାଟ ଗୋ ।
ବାରୁ ବାନ୍ଧିଛନ୍ତି ଘାଟ ଜନନୀ ଗୋ । ୨୩ ।
ଭକ୍ତ ବାଞ୍ଛା ପୂର୍ଣ୍ଣ କର । ଭରୁଛନ୍ତି ଜଳେ ତୋପାଦ ଧ୍ୟାୟି ଗୋ ।
ଭବ କ୍ଷୁଧୁ ଦୃଶ୍ୟହୋଇ ଜନନୀ ଗୋ । ୨୪ ।
ମାୟାଦେବୀ ନାମ ତୋର । ମାନସ କରନ୍ତି ସଂସାର ନର ଗୋ ।
ମରଣୁ ହୁଅନ୍ତି ପାର ଜନନୀ ଗୋ । ୨୫ ।
ଜଳନ୍ଧର ଯୁଦ୍ଧଠାର । ଯାଇଁ ପ୍ରବେଶିଲୁ କଇଲାଶର ଗୋ ।
ଜାଣି ନ ପାରିଲା ଅସୁର ଜନନୀ ଗୋ । ୨୬ ।
ରାମ ଅବତାରେ ହରି ରାବଣ ମାଇଲେ ତୋତେ ସୁମରି ଗୋ ।
ରାବଣ ତ ଗଲା ମରି ଜନନୀ ଗୋ । ୨୭ ।

ଲହ ଲହ ଜିହ୍ବା ତୋର । ଲାଗି ଯୋଗିନୀ ସଙ୍ଗେ କରୁ ଆହାରଁ ଗୋ ।
ଲମ୍ବୋଦର ସୁତ ତୋର ଜନନୀ ଗୋ । ୨୮ ।
ବାରୁ ମାରୱାଡ଼ି ଯେତେ । ବାରେ ବାରେ ଛବ ଦଅନ୍ତି ତୋତେ ଗୋ
ବାନ୍ଧ ଦର୍ଶନ ନିମନ୍ତେ ଜନନୀ ଗୋ । ୨୯ ।
ଶିବା ନାମ ତୁହି ବହୁ । ଶିରରେ ମୁକୁଟ ବହିଣ ଥାଉ ଗୋ ।
ଶିବ ମନକୁ ତୁ ମୋହୁ ଜନନୀ ଗୋ । ୩୦ ।
ଶରସ୍ୱତୀ ଭଗ୍ନୀ ତୁହି । ଶରସ୍ୱତୀ ସଙ୍ଗେ ଯଜ୍ଞକୁ ଯାଇ ଗୋ ।
ସାତ ଭଗ୍ନୀ ସଙ୍ଗେ ନେଇ ଜନନୀ ଗୋ । ୩୧ ।
ସ୍ୱର୍ଗେ ଇନ୍ଦ୍ରନାରୀ ଯେତେ । ତୁମ୍ଭଙ୍କୁ ନେଇଣ ଗଲେ ସମସ୍ତେ ଗୋ ।
ଶିବ ତୋ ଗଲେ ପଶ୍ଚାତେ ଜନନୀ ଗୋ । ୩୨ ।
ହାରିଲୁ ପ୍ରାଣ ସେଠାରେ । ହର ଦେଖିଲେ ଯେ ଦକ୍ଷ ଯଜ୍ଞରେ ଗୋ
ହର କୋପ ସେଠାବରେ ଜନନୀ ଗୋ । ୩୩ ।
ଖିତିରେ ଯଶ ତୋହର । ଖଣେ ଦୟା ମାତ କର ମୋଠାର ଗୋ ।
ବଇଦକୁଳ ଉଦ୍ଧାର ଜନନୀ ଗୋ । ୩୪ ।

=✹=

ଛବଶେ ଦୁର୍ଭିକ୍ଷ ଆଜ ପଡ଼ିଲା କାଳ ।
ଅନ୍ନ ବିନା ଲୋକମାନେ ହେଲେ ପ୍ରବଳ । ଘୋଷା ।

ଅନାବୃଷ୍ଟି ହୋଇଲା ଧାନ ଖରିଫ ମଲା । ୦
ଖାଇବାକୁ ଲୋକମାନେ ନ ପାଇ ଜଳ ।
ଦର୍ଦୁର ମୀନ ମାନ ହୋଇଲେ ହତଜ୍ଞାନ
ଜଳାଶୟମାନଙ୍କରେ ନ ପାଇ ଜଳ । ୨ ।
ଟଙ୍କାରେ ପାଞ୍ଚସେର ଚାଉଳ କାରବାର
ପାଉ ଚାଉଳରେ ଦେଲେ ମାଠିଏ ଜଳ । ୩ ।
ରବ ଇସାଣ ମୁଗ ମଲା କଳମ ସାଗ
ପେଜ ସଙ୍ଗତରେ ଦେଲେ ଖାଲ ଅମ୍ବିଲ । ୪

ବହୁ ବିଟପୀ ମାନ  ହୋଇଲେ ମଳି ହୀନ
ପେଟ କଷ୍ଟରେ ସେମାନେ ଆକୁଳ । ୫ ।
ଭାନୁ ତେଜ ବଢ଼ିଲା  ମହୀ ତପତ ହେଲା
ପଥିକ ବିଦେଶୀମାନେ ହେଲେ ଆକୁଳ । ୬ ।
ଓଡ଼ିଶା ପୋଡ଼ିଗଲା  ଇନ୍ଦ୍ର ବୃଷ୍ଟି ନୋହିଲା
ବଇଦ କହଇ ଗୀତେ ଏ କଳିକାଳ । ୭ ।

—:୦:—

ଦୁଃଖି ଶ୍ୟାମ ବାବା ହେ ଦୁଃଖ ଜଣାଉଛୁ ମୁହିଁ ।
ମୋ ଦୁଃଖ ମୋଚନ କର ସୁଜ୍ଞଜନ ଭବାନ୍ଧବେ ପଡ଼ିଛଇଁ । ପଦ ।
ତୁମ୍ଭ ପାଦ ସେବି ଜଣାଉଛୁ ମୁହିଁ ଆରତ ଫେଡ଼ ଗୋସାଇଁ ।
ଅଛି ହୀନଧନ ନାହିଁ ମୋ ନନ୍ଦନ ଧନ ହୀନ ମୁଁ ଅଟଇ । ୧ ।
ଆରତ ତାରଣ ବାନା ବହିଅଛ ଭକ୍ତଙ୍କୁ ରଖିବା ପାଇଁ ।
ଯୋଗାରୂଢ଼ ହୋଇ କ୍ଷେତ୍ରରେ ବସିଛ ଗୁହାରି ଶୁଣ ଗୋସାଇଁ । ୨
ଏତେକ ମାଗଇ ଅନ୍ୟ ନ ମାଗଇ ଜୀବ ପରିତ୍ରାଣ ପାଇଁ । ୩ ।
ବୈଦ୍ୟ ଅରକ୍ଷିତ ଭାବୁଅଛୁ ତାଙ୍କ ପଦ୍ମପାଦରେ ସେବଇ ।
କୁଆଗଡ଼ିଆରେ ପଡ଼ି ରହିଅଛୁ ଦୟାକର ଭାବଗ୍ରାହୀ । ୪ ।

---

ମୋ ବାବା ମୋ ଦୁଃଖି ଶ୍ୟାମ । ମୋ ଦୁଃଖ କର ମୋଚନ । ପଦ ।
ମୁଁ ମୂଢ଼ ଅଟେ ଅଜ୍ଞାନ ନୋହିଲାମୋର ଚେତନ । ୧ । ଘୋଷା ।
ସୁତ ବନ୍ଧୁ ଧନ ଜନ  ମୁଁ ଅଟଇ ଦୁଃଖିଜନ
ମୋ ଦୁଃଖ କର ମୋଚନ, ତୋ ପାଦେ ଗଲି ଶରଣ । ୨ ।
ସଂସାରରେ ପାପୀ ମୁହିଁ  ମୋ ପାପ ନାଶ ଗୋସାଇଁ
ଶରଣ ପଶିଲି ମୁହିଁ; କର ମୋତେ ପରିତ୍ରାଣ । ୩ ।
ପ୍ରଭୁଙ୍କୁ ମୁଁ ଦେଖି ନାହିଁ  କର୍ଣ୍ଣରେ ନାମ ଶୁଣଇ
ବାବା ମୋତେ ଦୟା ବହି, ଦିଅ ମୋତେ ଦିବ୍ୟଜ୍ଞାନ ।୩

କଣ୍ଠରେ ମୋ ପଦ ଥିବ ହୃଦରେ ଜ୍ଞାନ ହୋଇବ
ଅର୍ଥ ଭାବ ବଗୁଥିବ, ଏ ଆଜ୍ଞା ଦିଅ ଆପଣ । I ।
ଅନ୍ୟ ମାଗୁଣି ନୁହଇ ଦୟାକର ବାବା ଶୁଣ
ବୈଦ୍ୟନାଥ ଗୀତେ କହ ଭବରୁ କର କାରଣ । ୨ ।

---

ଜୟ ଗୋବିନ୍ଦ ହରି ହେ । ଏ ଭବସଂସାରୁ ମୋତେ କରନ୍ତୁ ପାରି ।
। ଘୋଷା ।
ଲାଗି ଅଲଗା ହୋଇଛ ଘଟେ ଘଟେ ପୂରି ଅଛ
ନଳିନୀ ପତ୍ରରେ ଯେସନେ ନ ରହେ ବାରି । ୧ ।
ଛପନ କୋଟି ମଧ୍ୟର କରୁଅଛ ଯେ ବିହାର
ଶୂନ୍ୟରେ ରହିଣ ଅଛ ରୂପ ନାହିଁ ତୁମ୍ଭରି । ୨ ।
ବଙ୍କନାଳେ ତୁମ୍ଭ ସ୍ଥାନ ଶରୀରେ କର ଧାରଣ
ବୈକୁଣ୍ଠ ସଙ୍ଗରେ ଭଜେ କରିଛ ହରି । ୩ ।
ଚନ୍ଦ୍ର ସୂର୍ଯ୍ୟ ଯହିଁ ନାହିଁ ସେ ସ୍ଥାନେ ଭଜେ ଗୋସାଇଁ
ଗୀତେ ବୈଦ୍ୟନାଥ କହ ତୋପାଦ ଧରି । ୪ ।

---

ଆରେ ମୂଢ଼ମନା । ଆଉ କାହିଁରେ ନାହିଁ ଭାବନାରେ । ଘୋଷା ।
ବାଡ଼ି ବେଢ଼ାର ଛଟେଣି ଗଣ୍ଠି କି ମାରିଛୁ ଟାଣି
ଗଣ୍ଠି ଛୁଟିଗଲେ ରେ (ଦୋହରାଇ) ହେବ କହା କହା ରେ ।୧ ।
ପିଣ୍ଡୁ ଯେତେବେଳେ ପ୍ରାଣ ଛୁଟିଯିବ ମୂଢ଼ମନ
କଣ୍ଠ ପଡ଼ିଯିବ ରେ (ଦୋହରେଇ) ଜିହ୍ବା ହେବ ଖିନ୍ନା ଖିନ୍ନା ରେ ।।
ଦେଖ ଏ ମାୟା ସଂସାର କେହି ନୁହନ୍ତି କାହାର
ପୁତ୍ର ଭାଇ ବନ୍ଧୁଜନରେ । ୨ । ବସି କରିବେ କାନ୍ଦଣା । ୩ ।
କାନ୍ଦଣା ସାରିଣ ତହିଁ ଉଠାଇଣ ସେ ବନ୍ଧୁ ଭାଇ
ଶ୍ମଶାନକୁ ନେଇ ରେ । ୨ । ଚିତା ସଜାଡ଼ିଣ ଦ୍ୟନ୍ତି ନିଆଁରେ ।୪

ଏକ ଦୁଇ ନବ ହୋଇ　　　　　　　ଦଶ ଦନେ କ୍ଷୌର ହୋଇ
ଏକାଦଶ ଗଲେରେ । ୨ । ଦ୍ୱାଦଶରେ ଦେବୀସର୍ଜନା ରେ ।୫।
ସଂସାର ମାୟାରୁ ତୁଟ୍ଟ　　　　　　　ପରମ ଗୁରୁଙ୍କୁ ଭଜ
ହରିନାମ ଭଜରେ । ୨ । ଭଜିଲେ ପାଇବୁ କଳା କଥା ରେ ।୭।
ରାମନାମ ମୂଳକର　　　　　　　ଭଜ ତୁ ଏକା ଅକ୍ଷର
ବୋଲେ ବୈଦ୍ୟନାଥ ରେ ।୬। ଗତି ନାହିଁ ହରିନାମ ବିନାରେ ।୭।



ମନ ପତ୍ରରେ ବାଇମନକୁ ଚିହ୍ନି । ଭେଟ ପଡ଼ୁଛୁ ଆଜ ଛୁଡ଼ିବୁ ନାହିଁ ରେ । ସୁକର ଜାତ । ଜାଣି ଭଜିଲେ ତୁହି ହେବୁ ମୁକତି ରେ । ୧ । ଘୋଷା ।

ଖଲ ରଗାଇ କେତେ ରଖିଛୁ ଧନ । ଶିନ ନାଲେ ସେ ଅଛୁ କେବଣ ସ୍ଥାନ ରେ । ଖର ଅଛଇ । ଖାଇଣ ତୋତେ ଭସ୍ମ କରିବ ମୁହିଁ ରେ । ୨ ।

ଗୋଲହାଣ୍ଡି ପାଠଣା କେଉଁ ଠାବରେ । ଗଲୁଛୁ ସୁଧା ଦେଖ ସେ କେଉଁଠାରେ ରେ । ଗୋଡୁ ଅଛଇ । ଗଳାରେ ଧକା ଦେଇ ମାରିବ ମୁହିଁରେ । ୩ ।

ଘଟ କେମନ୍ତେ ଏବେ ହେଲା ଉତ୍ପତି । ଘଟଣା କରି କହିବୁ ମୁଢ଼ ମତିରେ । ଘୁଡ଼ା ଅଛଇ । ଘଡ଼ିକେ ମୁଣ୍ଡ ତୋର କାଟିବ ମୁହିଁରେ ।୪।

ଙର୍ମ ଧର୍ମ ସେ ଯୋଇଜାଲା କେମନ୍ତ । ଉପାୟ କରି କହ ମୋ ପାଖେ ସତରେ । ଉଲ୍ଲୁକ ତୁହି । ଉପାୟ କରି ତୋତେ ମାରିବ ମୁହିଁ ରେ । ୫ ।

ଚକ୍ରିଧରଙ୍କ ସ୍ଥାନ କେଉଁ ଠାବରେ । ଚିରନ୍ତନ ଅଛଇ କେଉ ପ୍ରକାରରେ । ଚତକ ତୁହି । ଚେର ପଛ ଏ ବାନ୍ଧି ମାରିବ ମୁହିଁ ରେ ॥

ଛତ୍ର ଚକି ସେ ଅଟେ କେବଣ ସ୍ଥାନ । ଛନ୍ଦ କପଟ ଛାଡ଼ି କହ

କାଇ ମନରେ । ଛନକା ମଇ । ଘଭରେ ଚୋର ମୁହଁ ମାରିବ ନାଇରେ । ୭ ।

ଜଗନ୍ନାଥଙ୍କ ସ୍ଥାନ ସେ କେଉଁଠାରେ । ଜାଣିଛୁ ଯେବେ ଭୁଦ୍ଧ କହ ମୋଠାରେ । କୁହୁକ ଜାଇ । ଜାଣିଥିଲେ ତୁ କହ ମୋହର କଚରେ । ୮ ।

ଝର ତ୍ରୀବେଣୀ କହ କେବଣଠାରେ । ଝର ପଦ୍ମଛୁ ଆସି କେବଣ ଠାରେ ରେ । ଝୋଲଅ କେଲା । ଝୁରି ମରିବୁ ଭୁଦ୍ଧ ନ କର ହେଲା ରେ । ୯ ।

ନରକାରଙ୍କ ସ୍ଥାନ ଜାଣିଛୁ ଯେବେ । କଷ୍ଟନ ହୋଇ ଭୁନ୍ଦ ମୋହରି ଆଗେ ରେ । କଷ୍ଟେ ମରିବୁ । ନାରାୟଣଙ୍କୁ ଭଜ ଭବୁ ତରିବୁ ରେ । ୧୦ ।

ଝଲ ପଢିବୁ ଯାନେ କହୁଛୁ ତୋତେ । ଝାଣପଣଙ୍କୁ ଚୋର ଭାଙ୍ଗିବ ହାତେରେ । ଝୋକା ବୁଝିଆ । ଝିକି ଝିକି ଶୃଗାଲ ଖାଇବ ହୁଆରେ ॥

ଠକିଛବୁ ତୁ ଠିକ ମୁଣ୍ଡ ପଢିଲେ । ଠକ ଏ ମାୟା ଦେହ ବହିଛୁ ଭଲେ ରେ । ଜ୍ଞାନାନନ୍ଦ କହେ । ଠାବ ନ ପାଇବୁ ତୁ ଏ ମାୟା ଦେହେ ରେ । ୧୨ ।

—୦—

